# ଆବାହନ ।

ଜୟ ହିଙ୍କମଣି, ଭାରତ-କୁନ୍ତଳେ

ଭାରତ-ଈଶ୍ବରର ପୁଣ୍ୟ ରକ୍ତ-ପ୍ରତିଷ୍ଠାଏ

ଛ ଦେଉ ତୋଷିବ ଅଙ୍କ ଦରଦ୍ର ଉତ୍କଳ ,

କି କଷ୍ଟର ଅଛ ଲଟି, ଅଭିବାଦନରେ !

ଦେବ !

ଦରିଦ୍ର ଉତ୍କଳ ଯଦି, ବନ୍ଧୁ ପୁରସ୍କୃତ

ରଖିଅଛୁ ଯତନରେ , କୀର୍ତ୍ତି କଳେବରେ ,

ମଗଧ-ନୃପତ୍ନି ପୁଣି କର୍ଣ୍ଣାଟ-ଭୂଷଣ ,

ଯଯାତ୍ତ, ଅନନ୍ତବର୍ମ୍ମା ଗଙ୍ଗ-କୁଳେଶ୍ବର-
କୀର୍ତ୍ତିଶ୍ରଜି, ସର୍ବଧ୍ବଂସି କାଳର କବଳୁଁ ।
ଧୀରମଣି ! ପୁଣ୍ୟଶ୍ଳୋକ ନରପତି ତସ୍ୟ
ଘାସିଥିଲେ ବାହୁବଳେ ଅରମ୍ଭି ଗୌଡ଼ରୁ
ଗୋଦାବରୀ-ତୀର-ବ୍ୟାପୀ ଏଭୂମି ଖଣ୍ଡିକ ; ※
ସାମାନ୍ୟ, ଉତ୍କଳ ଯଦ୍ୟ ଭାରତ ସାମ୍ରାଜ୍ୟେ,
ପୁଣ୍ୟପୁଞ୍ଜ କୋଥାରେ ମାଳାଦି କନ୍ଦରେ
କାଂସର୍ଗ ତାମସ ଭାବ ଘଉଡ଼ି କନ୍ଦରୁଁ
ସନ୍ଧ୍ୟାଦ୍ରଷ୍ଟ ଯନ୍ତ୍ରେ ମହାଜ୍ୟୋତିର ଜ୍ୱଳେକ ;
ଯେ ଜ୍ୟୋତି ଜ୍ୱଳେକେ ଅଦ୍ୟା ସାଗର-ବଧୌତ-

※ ଏହି ବିସ୍ତୃତ ଭୂ-ଖଣ୍ଡର ଅଧୀଶ୍ବର ଥାଇ "ଗୌଡେ-ଶ୍ବର ଗଜପତି ନବକୋଟି କର୍ଣ୍ଣାଟ ଉତ୍କଳ ବର୍ଗେଶ୍ବର ବୀରାଧିବୀରବର ପ୍ରତାପ" ଉପାଧି ଧାରଣ କରିଥିଲେ ।

କୁମାରୀକାଠାରୁ ଦେଶ ମାନସ ପର୍ଯ୍ୟନ୍ତ
ହେଉଅଛି ଅଲୌକିକ ଅଲୋକପାମାନେ୍ୟ ।
ଉତ୍କଳ-କଳସ୍ପୃଶୀ ବୀର ଐନ୍ଦ୍ର-ପୁରନ୍ଦର ,
( ଦକ୍ଷିଣ-ସ୍ୱର୍ଣ୍ଣମଣ୍ଡଳୀ-ମୁକୁଟ-ମଣିରେ
ସଦା ନୀରାଜିତ ହେବ ' ଯାଙ୍କ ପାଦପୀଠ)
ଗଙ୍ଗକୂଳରତ୍ନ ସେହି ଶୈଳଗଙ୍ଗଙ୍କର
ଅକ୍ଷୟ୍ୟ କୀରତି ମାଳା ସ୍ତୁପନ୍ତ-ପାଠରେ
ନୀଳାଦ୍ରି କନ୍ଦରେ ପୁଣି ସୌଧ ଚନ୍ଦ୍ରଚୂଡେ ,
କୁଳ-ଧର୍ମଶିଖାରୂପେ ସମୁଜ୍ଜ୍ୱଳେ ଦେବ!
ବୈଷ୍ଣବ ଧର୍ମର ଜ୍ୟୋତି ଉତ୍କଳେ ଫୁଟିବେ । *

* ପରିଶିଷ୍ଟ ଦ୍ରଷ୍ଟବ୍ୟ ।

ପ୍ରାଚୀପଟେ ପଥିକର ଦୂର ଦରଶନ୍,
ଗାଙ୍ଗେୟ ଗୌରବ କୀର୍ତ୍ତି ଏକାମ୍ର କାନନ- * ।
ପ୍ରାସାଦ-ଶିଖର-ଶୋଭି-ପିଜାଙ୍କ ପ୍ରବର
ସବିତା ଅରୁଣ-ଭାଲେ ସିନ୍ଦୁର ସମାନେ
ହଭାସଇ, ଯେବେ ଦେବ ହିରଣ୍ମୟ ରଥେ
ଏକାମ୍ର କାନନ ଭେଦି ଉଠଇଁ ବାହାରନ୍ତ ।
ସେ ଶୁଭ୍ରଧାର ତଳେ ଦେବ! ହହର ମୁଦରେ,
ହେଉ ସେଛ ଶୁଭ୍ରା ତବ ଶିବଦ ସର୍ବଦା ।
ଫିଟିଲଣି ପ୍ରାଚୀଦ୍ୱାର କୁଙ୍କୁମେ-ରଞ୍ଜିତ ;
ତବ ଆଗମନ ଇଚ୍ଛି ପୌରନରୀ ଦୃଷ୍ଟି,

---

* ଏସ୍ଥାନ ଗାଙ୍ଗେୟ କୀର୍ତ୍ତି ବୋଲି ପ୍ରତିପନ୍ନ ହୋଇଅଛି ମୁକ୍ତେଶ୍ୱରରୁ ଉତ୍କୀର୍ଣ୍ଣ - ଶିଳାଫଳକରୁ ଜଣାଯାଏ ଯେ ରାଜରାଜ (ଗଙ୍ଗ) ଙ୍କର ପୁତ୍ର ଅନଙ୍ଗଭୀମଦେବ ୧୧୭୫ ଶକ ବା ୧୨୫୩ ଖ୍ରୀଃ ପର୍ଯ୍ୟନ୍ତ ରାଜତ୍ୱ କରନ୍ତି ଓ ସେ ଭୁବନେଶ୍ୱର ମହାମନ୍ଦିରର ନିର୍ମାତା ଓ ଭୂମି-

ଫୁଟାଇଲା କବା ସତେ ହେମ-ଘଟୋପରେ
ପାଞ୍ଚଜାତ-ଦାନ ଶୁଭ ବନ୍ଦାପନା ପାଇଁ ?
କି ଅନନ୍ତ ଅଛି ଦେବ ! ଉତ୍କଳ ଭାଗ୍ୟରେ ,
ପୂରିଲାଣି ସତ ହୋଇ ଅଟାର କଳ୍ପନା ,
ତବ ଆଗମନ ଯେଣୁ ଉତ୍କଳ ଖଣ୍ଡରେ ।
ନାହିଁ ଅଛି କବି-କୁଳ ରବି ଉପେନ୍ଦ୍ର ,
ନାହିଁ ରାଧାନାଥ , ନାହିଁ ଶ୍ରୀମଧୁସୂଦନ ;
ସାରସ୍ୱତ ଛନ୍ଦେ ଅଛି କେ ହେ ବାରଣି !
ଗାଇବ ତୁମ୍ଭର କୀର୍ତ୍ତି ଲଳିତ ଗୀତରେ !
ଉତ୍କଳ ଅନ୍ଧାର ଦେବ ! ଧ୍ରୁବ ସତ୍ୟରେ—

---

ନେଷ୍ଟର ସ୍ଥିତ ଶିଳାଲିପିରେ ‘ ରଙ୍ଗ – ସ୍ୱଙ୍ଗତନ୍ତ୍ର ’ ବୋଲି ସ୍ପଷ୍ଟ ଉଲ୍ଲେଖ ଅଛି , ଏଣୁ ସନ୍ଦେହର କାରଣ ନାହିଁ । କେଶରୀ ବଂଶଙ୍କର କୀର୍ତ୍ତି ବୋଲି ଯେ ପ୍ରବାଦ ତାହା ମିଥ୍ୟା ଅଟେ ।

(୨)

ଉତ୍କଳର ସ୍ୱର୍ଣ୍ଣନାଥ ପରି ଅର୍କ ଦେବ !
ଦେଖା ଦେଉଅଛ ଯେଣୁ ଉତ୍କଳ-ଗଗନେ ।
ଓଷଧୀଶ ପଞ୍ଚଭୂମ୍ୟେ ସ୍ୱଜନଂ ମଧ୍ୟରେ
ଶୋଭୁଅଛ , ତାରାନାଥ ଯେହ୍ନେ ତାରା ପୁଞ୍ଜେ ।
ଶୁଭିଲାଣି ଶଙ୍ଖରବ ନୀଳାଦ୍ରି କନ୍ଦରେ ,
ଉଠିଲାଣି ଧୂପଗନ୍ଧ ପ୍ରାତଃ ଆଳତିରୁ ,
ଅନୁକୂଳ ସମୀରଣ ସେବିବ ଶୀକର-
ସହିତେ ମିଶାଇ ଏବେ ଅହେ ଧୀରମଣି !
ଅନୁକୂଳ ହେଉ ତବ ଶୁଭ ଆଗମନେ ;
ସୁକାନ୍ତ-ଚନ୍ଦ୍ରିକା ଅତି ଉତ୍ଫୁଲ୍ଲ ହୃଦୟେ

(୭)

କଲ୍ପ କଲ୍ପ ସ୍ଥଳେ ତବ ଆଶୀର୍ବାଦ ବଳେ ;
ଉତ୍କଳ--ଜନତା ଭେଦ ତବ ଦୁର୍ଭାଗ୍ୟ
ଦ୍ୱିଗୁଣିତ ତେଜ ଯାଉ ଖଣ୍ଡଗିରି କୋଳେ ;
ନୈଲଙ୍ଗୀ ଭଙ୍ଗିରେ ସାଜି ଚକୁର କଲାପ ,
ସୁକେଶିନୀ ମଣ୍ଡି କେଶ ବଙ୍ଗ ଆଭରଣେ ,
ଉତ୍କଳୀୟ ଚିରନ୍ତନ ପ୍ରଥା ଅନୁସର ,
ପୂର୍ଣ୍ଣକୁମ୍ଭ ସ୍ଥାପୁଛନ୍ତି ଜନ ଦ୍ୱାରେ ଦ୍ୱାରେ ;
ଉତ୍କଳର ଦ୍ୱାର ରୂପୀ କଟକ ନଗରୀ
ସୁସଜ୍ଜିତା ଆଜ ତବ ଅଭ୍ୟର୍ଥନା ପାଇଁ ;
କି ରାଜା କି ପ୍ରଜା ଆଜ ବଢ଼ାନାପୀ ଗଂଢ଼

ପୂଲ ହୋଇଛନ୍ତୁ ଦେବୀ! ତବ ଦରଶନେ ,
(ରକ୍ତବାହୁ-ଅସୀବର ହେଉ ବିଡ଼ମ୍ବିତ
ଅପଭ୍ରଂଶେ "ବଡ଼ାନାସି" ଯାନାମ କଳ୍ପନା (†)
ମନେ ପଡ଼େ ଦେବୀ! ସେହି ଗଙ୍ଗଙ୍କ ବିଭବ ,
ଫୁଟୁଥିଲେ · ଖଟଣିରେ ଯାଙ୍କ ପଦତଳେ
ଉତ୍କଳ-ନୃପତିବର୍ଯ୍ୟ ସମ୍ରାଟ - ସଦନେ ;
ସେ ବିଭବେ ଅଭିଷିକ୍ତ ବ୍ରହ୍ମ-ଈଶ୍ୱର ,

---

(†) ଅସିତ ବଡ଼ମ୍ଭନ ହୋଇଅଛି ଯେ ସ୍ଥାନରେ ସେ ସ୍ଥାନ ଅସିବଡ଼ମ୍ଭନ , ଲୋକମୁଖେ ବଡ଼ମ୍ଭନଅସି , ଅପଭ୍ରଂଶେ ବଡ଼ାମ୍ବାସି ।

ତାହାଙ୍କର ପ୍ରତାପ ଜାଣି ହେ ତୁମ୍ଭଙ୍କୁ
ଖଟିବେ ଅନନ୍ତେ ଅଛି ଭବ ଖଟଣିରେ ;
ବାରେନ୍ଦ୍ରାଙ୍କ ଶୃଙ୍ଗ ପୁଣି ନେହେନ୍ଦ୍ର ବଳର
ନାରସିଂହ କୀର୍ତ୍ତି-କୁଞ୍ଜ ଧବଳ ସୌଧକୁ ,
ପରଶନ୍ତ ଭାନୁଦେବ ସର୍ବାଗ୍ରେ ଯାହାକୁ
ଫୁଟିବାକୁ ଦ୍ୟୁଲାଞ୍ଛନ-ଚୂଡ଼ା-ଶତଦଳ ; ( * )
( ଫୁଟାନ୍ତ କମଳ-ବନ ଯେ ରୀତି ସହସ୍ରେ )

( * ) ଦ୍ୟୁଲାଞ୍ଛନ , ସୂର୍ଯ୍ୟଙ୍କର ନାମ ବିଶେଷ ଏଣୁ ତାହାଙ୍କର ସୌଧ-ଶିଖର ପଦ୍ମଦ୍ୱାରା ମଣ୍ଡିତ ହେବା ସ୍ୱାଭାବିକ ।

(୧୦)

ଉତ୍କଳ ଗୌରବ ରଵ ଦେବବଂଶଙ୍କର
ଵଗତ ପ୍ରଭଭ୍ ଦେବ ! ମୂକସାକ୍ଷୀ ଯର
ଅଦ୍ୟାପି ସୁଦୃଢ଼ଅଛୁ ପ୍ରାସାଦ-ବୈଭବ ,
ପ୍ରକ୍ଷାଳନ୍ତୁ ଅମ୍ବୁପତ୍ତି ଯାର ପାଦଦେଶ
ଭାନଵୀପୂ ଭକ୍ତିଭରେ ଦେବ ! ପ୍ରତଦନ ;
ସେଭାନୁ-ବରେଣ୍ୟଭର୍ଗ ମହତ ପ୍ରସାଦ
ଲଭ ଵଞ୍ଚମଣି ! ତବ ସାମ୍ରାଜ୍ୟ-ଶାସନେ ;
ହେତ ଦେବ ନୃଭମସ୍ପୃ ତବ ଆଗମନ ।



# ପରିଶିଷ୍ଟ ।

- ବୀରସିଂହ
  - କାମାର୍ଣ୍ଣବ
  - ଦାନାର୍ଣ୍ଣବ
    - କାମାର୍ଣ୍ଣବ ( ୨ ୟ )
      - ରଣାର୍ଣ୍ଣବ
        - ବଜ୍ରହସ୍ତ ( ୨ ୟ )
        - କାମାର୍ଣ୍ଣବ ( ୩ ୟ )
          - ଗୁଣାର୍ଣ୍ଣବ ( ୨ ୟ )
            - ଜିତାଙ୍କୁଶ
            - ଗୁଣ୍ଡମ
              - କଳଗଲାଙ୍କୁଶ
            - କାମାର୍ଣ୍ଣବ ( ୪ ର୍ଥ )
              - ବଜ୍ରହସ୍ତ ( ୩ ୟ )
            - ବିନୟାଦିତ୍ୟ
  - ଗୁଣାର୍ଣ୍ଣବ ( ୧ )
  - ମାରସିଂହ
  - ବଜ୍ରହସ୍ତ



କାମାର୍ଣ୍ଣବ (୫ମ)　ଗୁଣ୍ଡମ (୨ୟ)　ମଧୁକାର୍ଣ୍ଣବ (୬ଷ୍ଠ)

ବଜ୍ରହସ୍ତ (୪ର୍ଥ)

ରାଜରାଜ (୧ମ)

ଚୋଡ଼ଗଙ୍ଗ ଦେବ ୯୯୯ ଶାକରେ ଅଭିଷିକ୍ତ

କାମାର୍ଣ୍ଣବ (୬ଷ୍ଠ)　ରାଘବ　ରାଜରାଜ (୨ୟ)　ଅନୟଙ୍କ ନାମାନ୍ତର ଅନଙ୍ଗ ଭୀମ (୧ମ)

ରାଜରାଜ (୩ୟ) ନାମାନ୍ତର ରାଜେନ୍ଦ୍ର

ଅନଙ୍ଗଭୀମ (୨ୟ)

ଇତିହାସ ପାଠରୁ ଜଣାଯାଏ ଚାଲୁକ୍ୟ ରାଜା ପ୍ରଥମ ବିଜୟାଦିତ୍ୟଙ୍କର ପୁତ୍ର ବିଷ୍ଣୁବର୍ଦ୍ଧନ ଗଙ୍ଗ ଓ କଦମ୍ବ ମାନଙ୍କୁ ପରାଜୟ କରି ଦକ୍ଷିଣାପଥରେ ରାଜ୍ୟ ବିସ୍ତାର କରିଥିଲେ ଏବଂ ଏହି ବିଷ୍ଣୁବର୍ଦ୍ଧନଙ୍କରପ୍ରପୌତ୍ର କୀର୍ତ୍ତିବର୍ମ୍ମ ଦେବ ୪୮୯ ଶକରେ ରାଜତ୍ୱ କରିଥିଲେ ( E. Hultzsch ଙ୍କର South Indian Inscriptions Vol. I Page 22 Camp Bell's Bombay ଦେଖ ) ଅତଏବ ଏପରି ସ୍ଥଳେ ଅନ୍ୟୂନ ତାହାର ଏକଶତ ବର୍ଷପୂର୍ବେ ବିଷ୍ଣୁବର୍ଦ୍ଧନ ଙ୍କର ଆବିର୍ଭାବ ଧରିଲେ ପ୍ରାୟ ୩୮୯ ଶକ ଅର୍ଥାତ୍ ୪୬୭ ଖ୍ରୀଃ ରେ ଗଙ୍ଗବଂଶ ମାନଙ୍କର ଦକ୍ଷିଣା ପଥରେ ଅସ୍ତିତ୍ୱ ସ୍ୱୀକାର କରାଯାଏ । Gazetteer ( Dharwar Vol. XXII Page 390 ) ରୁ ଜଣାଯାଏ ଯେ ଖ୍ରୀଷ୍ଟିୟ ୭ ମ ଶତାବ୍ଦୀରେ ଗଙ୍ଗରାଜଗଣ କୋଲ୍ହାପୁର, ଧରୱାର ଓ ବନବାସୀ ପ୍ରଭୃତି ସ୍ଥାନରେ ରାଜତ୍ୱ କରୁଥିଲେ । ଗାଙ୍ଗେୟ ରାଜା ଅନନ୍ତବର୍ମା ନାମାନ୍ତର ଚୋଡ଼ଗଙ୍ଗ-

ଙ୍କର ୧୦୪୧ ଶକର ପ୍ରଦତ୍ତ ତାମ୍ରଶାସନରୁ ଜଣାଯାଏ ଯେ ଚନ୍ଦ୍ରଙ୍କଠାରୁ ବୁଧ, ବୁଧଙ୍କ ପୁତ୍ର ପୁରୁରବା, ତାଙ୍କପୁତ୍ର ଆୟୁ, ତାଙ୍କପୁତ୍ର ନହୁଷ, ନହୁଷଙ୍କର ପୁତ୍ର ଯଯାତି, ଯଯାତିଙ୍କ ପୁତ୍ର ତୁର୍ବସୁ, ତୁର୍ବସୁଙ୍କ ପୁତ୍ର ଗାଙ୍ଗେୟ । ତୁର୍ବସୁ ଗଙ୍ଗାଦେବୀଙ୍କୁ ଆରାଧନା କରି ପୁତ୍ରଲାଭ କରିଥିବାରୁ ତାହାଙ୍କର ପୁତ୍ରରନାମ ଗାଙ୍ଗେୟ ରଖିଥିଲେ । ସେହି ଅନ୍ୱୟୀ ସକଳେ ଗଙ୍ଗାନ୍ୱୟ ବା ଗାଙ୍ଗେୟ ବୋଲି ପ୍ରସିଦ୍ଧ ।

ଚୋଡଗଙ୍ଗ ଦେବଙ୍କର ତାମ୍ର ଶାସନ ।

" ତତୋ ଯଯାତି ର୍ବ୍ବିଜିତାରି ଯୂଥର୍ଚ୍ଚକ୍ଷେ
ଟତସ୍ତୁର୍ବ୍ବସୁରୁର୍ବ୍ବରେଶଃ ।
ସପୂର୍ବ୍ବ ଗୀର୍ବ୍ବାଣ ଗୁରୋର୍ଗରିମ୍ଣା ମାତ୍ରା
ମହସ୍ୟା ରସିଦ୍ଧ ପ୍ରବୁଦ୍ଧଃ
ଅପୁନଦ୍ଧଂ ପ୍ରାପ୍ତସ୍ତୁଚିର ମଭଖିନ୍ନୋ ନୃପବୃଷ
ସ୍ତ ଗଙ୍ଗାମାରାଧ୍ୟାଂ ଜନୃତ ଗଭସ୍ତ୍ରାଧ୍ୟ ବରଦାମ୍
ଅଜେୟଂ ଗାଙ୍ଗେୟଂ ସୁ ଜମଲ ଭଜାରଭ୍ୟତ ତଦା

କ୍ରମସ୍ତୁତ୍ ବଂଶ୍ୟାନାଂ ଭୁକ୍ତ ଜଗୃତ  ଗଙ୍ଗାନ୍ୱଯ୍ୟ ଇତି”

ଏତଭିନ୍ନ କଟକ ଜିଲ୍ଲାରେ ନବାବିଷ୍କୃତ ଉତ୍କଳରାଜ ବୀର ଶ୍ରୀନରସିଂହ ଦେବଙ୍କର ଭନପ୍ରସ୍ଥ ତାମ୍ରଫଳକରୁ ପ୍ରକାଶ୍ୟଭାବେ ଜଣାଯାଏ ଯେ ତୁର୍ବ୍ବସୁଙ୍କର ପୁତ୍ର ଗାଙ୍ଗେୟ୍ୟ ତାହାଙ୍କର ପୁତ୍ର ବଶ୍ରେଚନ, ତାଙ୍କରପୁତ୍ର ସାମ୍ନେଦ୍ୟ, ତାଙ୍କର ପୁତ୍ର ଭସ୍ୱାନ, ତାହାଙ୍କର ପୁତ୍ର ଦତ୍ତସେନ, ତାଙ୍କରପୁତ୍ର ସୋମଦେବ, ତାଙ୍କର-ପୁତ୍ର ଅଶ୍ୱଦତ୍ତ ଦେବ, ତାଙ୍କରପୁତ୍ର ସୌଖ୍ୟଙ୍ଗ, ତାଙ୍କରପୁତ୍ର ଚିତ୍ରାଙ୍ଗଦ, ତାଙ୍କରପୁତ୍ର ସୀରଧ୍ୱଜ, ତାଙ୍କରପୁତ୍ରଧର୍ମ୍ମିଷ୍ଠୀ, ତାଙ୍କରପୁତ୍ର ପରୀକ୍ଷିତ, ତାଙ୍କର ପୁତ୍ର ଜୟତ୍ସେନ, ତାଙ୍କରପୁତ୍ର ବଜ୍ରସେନ, ତତ୍ପୁତ୍ର ବୃଷଧ୍ୱଜ, ତାଙ୍କରପୁତ୍ର ଶକ୍ତି, * * * * ତତ୍ପରେ ପ୍ରଗଲ୍ଭ, ତାଙ୍କରପୁତ୍ର କୋଲାହଳ। ଏହି କୋଳାହଳ ଦେବ ଗଙ୍ଗାବାଡୀ ନାମକ ରାଜ୍ୟରେ କୋଲାହଳପୁର (ନାମାନ୍ତର କୋଲ୍ହାପୁର ଆଧୁନିକ) ନଗର ସ୍ଥାପନ

କରିଥିଲେ, ଏହି କୋଳାହଳଙ୍କ ପୁତ୍ର ବିବ୍ରେଚନ ଏବ ତାହାଙ୍କ ଉତ୍ତାରୁ କୋଲ୍ହାପୁରରେ ୮୧ ଜଣ ରାଜା ରାଜତ୍ୱ କରିବା ଉତ୍ତାରୁ ତାହାଙ୍କ ବଂଶରେ ଖାରସିଂହ ନାମକ ନୃପତି ଜନ୍ମଗ୍ରହଣ କରନ୍ତି, ଯେଉଁ ଖାରସିଂହଙ୍କ ଠାରୁ ଆରମ୍ଭ ବର୍ତ୍ତମାନ କାଳପର୍ଯ୍ୟନ୍ତ ଗଙ୍ଗବଂଶର ପରିଚୟ ପ୍ରଦତ୍ତ ହେଲା । ( ବଂଶ ବୃକ୍ଷ ଦେଖ )

ଏହି ଖାରସିଂହଙ୍କର ପୁତ୍ର ଯୁଦ୍ଧପ୍ରିୟ ଜ୍ୟେଷ୍ଠ କାମାର୍ଣ୍ଣବ, ତାହାଙ୍କର ପିତୃବ୍ୟ ନରସିଂହଦେବଙ୍କୁ ପିତୃରାଜ୍ୟ ଦତ୍ତକରି ଚତୁର୍ଭ୍ରାତାସହ ଅନ୍ୟ ରାଜ୍ୟ ଜୟକରି ଆଧିପତ୍ୟ ବିସ୍ତାର କରିବା ମାନସରେ ଦକ୍ଷିଣାପଥକୁ ଯାତ୍ରା କରିଥିଲେ, ନରସିଂହ ଦେବଙ୍କର ବୃଦ୍ଧ ତାମ୍ରଶାସନ ଓ ବ୍ରେତଗଙ୍ଗ ଦେବଙ୍କର ତାମ୍ର ଶାସନରୁ ଜଣାଯାଏ ଯେ, ମହାରାଜ କାମାର୍ଣ୍ଣବ କଳିଙ୍ଗ ଜୟ ପୂର୍ବରେ ଗୋକର୍ଣ୍ଣ ସ୍ୱାମୀଙ୍କର ଅରାଧନାରେ ସାମ୍ରାଜ୍ୟ ଲାଭ କରିବାରୁ ଚିହ୍ନ ସ୍ୱରୂପ ପତାକାରେ ବୃଷଭ-ଲାଞ୍ଛନ

ଧାରଣ କରୁଥିଲେ କିନ୍ତୁ ଅମ୍ଭେମାନେ ଗେଡ଼ଗଙ୍ଗଙ୍କର ଅନ୍ନୟୀ ହେଉରୁ ଏବଂ ଗେଡ଼ଗଙ୍ଗ ନିଜେ ପରମ-ବୈଷ୍ଣବ ଥିବାରୁ ତାଙ୍କର ଚିହ୍ନ ସ୍ୱରୂପ ବିଷ୍ଣୁ ଆୟୁଧ-ଚିହ୍ନ ଶଙ୍ଖ ଓ ଚକ୍ର ସ୍ୱପତାକାରେ ଧାରଣ କରୁଅଛୁଁ । ଏହି ଗୋକର୍ଣ୍ଣ ( ଏହାର ଆଦର୍ଶରେ ସମୁଦ୍ରତୀରରେ ମହେନ୍ଦ୍ରଗିରି ଉପରେ ପ୍ରଥମ କାମାର୍ଣ୍ଣବ ଗୋକର୍ଣ୍ଣେ-ଶ୍ୱରଙ୍କର ମନ୍ଦିର ନିର୍ମାଣ କରିଥିଲେ ଗେଡ଼ଗଙ୍ଗ ଓ ଅପର ଗଙ୍ଗରାଜଙ୍କର ତାମ୍ରଶାସନରେ ଗୋକ-ର୍ଣ୍ଣେଶ୍ୱରଙ୍କର ସ୍ତୁତ ପରିଲକ୍ଷିତ ହୁଏ ) ନାମକ ପ୍ରସିଦ୍ଧ ତୀର୍ଥ ଅଦ୍ୟାପି ସୈହ୍ୟାଦ୍ରିର ସମୁଦ୍ର ତଟରେ ଅବସ୍ଥିତ ଏବଂ ସେଠାରେ ଗଙ୍ଗବଂଶୀୟଙ୍କର ଦୂର୍କ୍ୟା ଗଙ୍ଗାଦେବୀ-ଙ୍କର ମନ୍ଦିର ଅଦ୍ୟାପି ବିଦ୍ୟମାନ । କୋଲ୍ହାପୁର ସ୍ଥାପନ-କର୍ତ୍ତାଙ୍କର ମାମାନ୍ତର ଅନନ୍ତବର୍ମ୍ମା ଥିଲା । କୋଲ୍ହା-ପୁରର ଅଧିଷ୍ଠାତ୍ରୀ ଦେବୀ ମହାଲକ୍ଷ୍ମୀ ଥିଲେ । ଅଦ୍ୟାପି ସେହି ମନ୍ଦିର ବହୁ ପ୍ରାଚୀନ ବୋଲି ଖ୍ୟାତିଲାଭ କରି ରହିଅଛି ଏବଂ ଗାଙ୍ଗେୟ ବଂଶରେ ମଧ୍ୟ ତାହାଙ୍କୁ ଇଷ୍ଟ-

ଦେବୀ ସ୍ୱରୂପରେ ଗ୍ରହଣ କରୁଥିଲେ । ଯେହେତୁ ସ୍ଥାନେ୨ ଗାଙ୍ଗେୟ ରାଜାଙ୍କର ମୋହରରେ ଲକ୍ଷ୍ମୀ-ଦେବୀଙ୍କର ମୂର୍ତ୍ତି ଦେଖା ଯାଉଥାଏ । ଶ୍ୱେତଗଙ୍ଗଙ୍କର ତାମ୍ରଶାସନ ରୁ ଜଣାଯାଏ ଯେ, କାମାର୍ଣ୍ଣବ ଶ୍ୱେତ-ଭ୍ରାତାଙ୍କ ସହିତ ତ୍ରୈଲୋକ୍ୟପ୍ରସିଦ୍ଧ ବାଲାଦିତ୍ୟଙ୍କୁ ପରାଜୟ କରି କଳିଙ୍ଗ ରାଜ୍ୟ ଅଧିକାର କରନ୍ତି ଓ ଜନ୍ତାବୁ ନାମକ ସ୍ଥାନରେ ରାଜତ୍ୱ ସ୍ଥାପନ କରନ୍ତି । ସେ ତାହାଙ୍କର ଭ୍ରାତା ଦାନାର୍ଣ୍ଣବଙ୍କୁ କଣ୍ଟକ - ବନ୍ଧୁର - କନ୍ଦର, ଗୁଣାର୍ଣ୍ଣବଙ୍କୁ ଅମ୍ବାଡୀ, ମାରସିଂହଙ୍କ ଯୋଦାମଣ୍ଡଳ, ବଜ୍ରହସ୍ତଙ୍କୁ କଣ୍ଟକ-ବର୍ତ୍ତନୀ ପ୍ରଦାନ କଲେ । କାମାର୍ଣ୍ଣବ ଜନ୍ତାପୁର ନଗରରେ ରାଜତ୍ୱ କରନ୍ତି, ଏହିସ୍ଥଳ ମାନ୍ଦ୍ରାଜ ପ୍ରେସିଡେନ୍ସି - ବିଶାଖାପତ୍ତନ ଜିଲ୍ଲାର ଅନ୍ତର୍ଗତ ଜୟନ୍ତୀଅଗ୍ରହାର ନାମକ ଗ୍ରାମର ନିକଟବର୍ତ୍ତୀ । 'ଜନ୍ତାପୁର' ଜୟନ୍ତୀପୁର ସଂସ୍କୃତର ଅପଭ୍ରଂଶ । ବର୍ତ୍ତମାନ ଜୟନ୍ତୀ ଅଗ୍ରହାରରେ ଅନେକ ଶିଳାଲିପିରେ ଦୃଷ୍ଟିଗୋଚର ହୁଏ । କଣ୍ଟକ - ବନ୍ଧୁର - କନ୍ଦର ସ୍ଥାନ

ଗୋଦାବରୀ କୃଷ୍ଣା ତନୁରୁ ଚାଲୁକର ଅନ୍ତର୍ଗତ କରୁଥିଲୁ ବୋଲି ଅନୁମିତ ହୁଏ । ବର୍ତ୍ତମାନ ସେଠାରେ ଅନେକ ପ୍ରାଚୀନ ଦେବାଳୟ ଓ ଅନେକ ଖୋଦିତ ଶିଳାଲିପି ଦୃଷ୍ଟିଗୋଚର ହୁଏ । ଚୋଡଗଙ୍ଗଙ୍କର ପିତା ରାଜରାଜ ଦ୍ରାବିଡ ଯୁଦ୍ଧରେ ଚୋଳରାଜ ରାଜେନ୍ଦ୍ର-ଚୋଳ ନାମାନ୍ତର କୁଲୋତ୍ତୁଙ୍ଗଙ୍କର କନ୍ୟା ରାଜ-ସୁନ୍ଦରୀଙ୍କୁ ଉପଯୁକ୍ତ ଦକ୍ଷିଣା ରୂପେ ଲାଭକରି ବେଙ୍ଗୀ ନାମକ ରାଜଧାନୀକୁ ଅଧିକାର ଭୁକ୍ତ କରିଥିଲେ । ଏହାଉପରେ ରାଜେନ୍ଦ୍ରଚୋଳ ଙ୍କର ପିତୃବ୍ୟ ବିଜୟାଦିତ୍ୟ ଶରଣାଗତ ହେବାରୁ ସୁରପୁରୀ ସଦୃଶ ବେଙ୍ଗୀକୁ ତାହାଙ୍କଠାରେ ସମର୍ପଣ କରି ଚୋଡଗଙ୍ଗଙ୍କର ପିତା ରାଜରାଜ ବେଙ୍ଗୀ ଉଦ୍ଧାର କରିଥିଲେ । ରାଜେନ୍ଦ୍ରଚୋଳ-ଙ୍କର ତାମ୍ରଶାସନରୁ ଜଣାଯାଏ ଯେ, ବିଜୟାଦିତ୍ୟ ୯୮୫ ଠାରୁ ୧୦୦୦ ଶକ ପର୍ଯ୍ୟନ୍ତ ବେଙ୍ଗୀରେ ରାଜତ୍ୱ କରନ୍ତି ସୁତରାଂ ୯୮୫ ଶକ ପୂର୍ବରୁ ଗଙ୍ଗବଂଶର ଅସ୍ତିତ୍ୱ ଦକ୍ଷିଣାପଥରେ ସ୍ୱୀକାର କରିବାକୁ ହେବ । ଗୋଦାବରୀ

ଜିଲ୍ଲାର ଇଲ୍ଲୋର ତାଲୁକ ଅନ୍ତର୍ଗତ ବେଙ୍ଗୀ ନାମକ ସ୍ଥାନ ବର୍ତ୍ତମାନ ମଧ୍ୟ ପ୍ରାଚୀନ—ବୈଭବର ପରିଚୟ ଦେଉଅଛି । ଉତ୍କଳରାଜ ଦ୍ୱିତୀୟ ନରସିଂହ ଦେବଙ୍କର ବୃହତ୍ ତାମ୍ର ଶାସନ ୧୪ ଶ୍ଳୋକରୁ ଜଣାଯାଏ ଯେ, ଚୋଡ଼ଗଙ୍ଗଙ୍କର ପିତାମହ ଉନ୍ମରାଜ୍ୟ ଜୟକରି ତ୍ରିକଳିଙ୍ଗନାଥ ଉପାଧି ଧାରଣ କରିଥିଲେ । ଚୋଡ଼ଗଙ୍ଗଙ୍କର ୧୦୪୦ ଶକାଙ୍କିତ ତାମ୍ର ଶାସନାନୁସାରେ ଜଣାଯାଏ ଯେ, ତାଙ୍କର ପିତାମହ ବଜ୍ରହସ୍ତ ୯୧୬ ଶକରେ ଅର୍ଥାତ୍ ୧୦୩୯ ଖ୍ରୀଷ୍ଟାବ୍ଦରେ ସିଂହାସନାରୋହଣ କରନ୍ତି । ସମ୍ଭବତଃ ଏହି ସମୟରେ ସେ କଳିଙ୍ଗ ନଗରୀ ଅବଧି ଅଧିକାର ଭୁକ୍ତ କରିଥିଲେ ।

ରାଜରାଜ ( ଚୋଡ଼ଗଙ୍ଗଙ୍କ ପିତା ) ବେଙ୍ଗୀ ବିଜୟାଦିତ୍ୟଙ୍କୁ ପ୍ରଦାନ କରି ନିଜ ପିତାଙ୍କର ରାଜଧାନୀ କଳିଙ୍ଗ ନଗରକୁ ଆସିଥିଲେ । ଏହି ସ୍ଥାନରେ ଚୋଡ଼ଗଙ୍ଗ ନାମାନ୍ତର ଅନନ୍ତ ବର୍ମ୍ମା ୯୯୯ ଶକ କୁମ୍ଭରାଶି, ଶୁକ୍ଳପକ୍ଷ, ରବିବାର, ରେବତୀ ନକ୍ଷତ୍ର, ମିଥୁନ ଲଗ୍ନରେ

ରାଜ୍ୟାଭିଷିକ୍ତ ହୁଅନ୍ତି,୪ ବ ସେହି ତାମ୍ରଶାସନରୁ ଜଣା-
ଯାଏ ଯେ ସେ ପଶ୍ଚିମରେ ବେଙ୍ଗୀ, ପୂର୍ବରେ ଉତ୍କଳ ଜୟ
କରିଥିଲେ । ଚୋଡଗଙ୍ଗଙ୍କର ୧୦୦୩ ଶକ ତାମ୍ରଶା-
ସନରେ ବେଙ୍ଗୀ ଓ ଉତ୍କଳ କଥା ଉଲ୍ଲେଖ ନାହିଁ
ଏଥିରୁ ବୋଧହୁଏ ୧୦୦୩ ଶକ ଅର୍ଥାତ୍ ୧୦୮୧ ଖ୍ରୀଷ୍ଟାବ୍ଦ
ପରେ ଓ ୧୦୪୦ ବା ୧୧୧୮ ଖ୍ରୀଷ୍ଟାବ୍ଦ ପୂର୍ବେ ଚୋଡଗଙ୍ଗ
ଓଡ଼ିଶା ଓ ବେଙ୍ଗୀ ଜୟ କରିଥିଲେ । ଏହି ଚୋଡଗଙ୍ଗ
ଉତ୍କଳର ଗଙ୍ଗବଂଶୀୟ ପ୍ରଥମ ଅଧୀଶ୍ୱର ଏବଂ ସେ
ପୁରୀର ଜଗନ୍ନାଥ ମନ୍ଦିର ନିର୍ମାତା । ମନ୍ଦିରାଧିପତିଙ୍କୁ
ଜୟକରି ଦକ୍ଷିଣ ମନ୍ଦିର ନିର୍ମାଣ କରିଥିଲେ । ଉତ୍କଳ-
ରାଜ ଦ୍ୱିତୀୟ ନରସିଂହଦେବଙ୍କର ବୃହତ୍ ତାମ୍ର-
ଶାସନର ୨୭ ଶ୍ଳୋକରେ ଏହା ଲିଖିତ ଅଛି । ପୁରୀର
ମନ୍ଦିର ଅନଙ୍ଗଭୀମଙ୍କର ନିର୍ମିତ ବୋଲି କଥିତ
ଏହା ସମ୍ପୂର୍ଣ୍ଣ ଭ୍ରମମାତ୍ର, ଏହି ଜଗନ୍ନାଥଙ୍କର
ମନ୍ଦିର ଉତ୍କଳ-ବିଜୟର ଚିହ୍ନ ସ୍ୱରୂପ ଅଟେ ।
ମାଦଳା ପାଞ୍ଜିରେ ଯେଉଁସବୁ କାଳ୍ପନିକ ଘଟଣାର

ଉଲ୍ଲେଖ ଅଛୁ ତାହା ନରସିଂହ ଦେବଙ୍କର ତାମ୍ରଶାସନ ଦ୍ୱାରା ଉଦ୍ଧୃତ ହୋଇଅଛି, ନରସିଂହ ଦେବଙ୍କର ତାମ୍ରଶାସନର ୨୭ ଶ୍ଳୋକରେ ମହାରାଜାଧିରାଜ ଚୋଡଗଙ୍ଗ ଦେବ ୧୦୬୪ ଶକରେ ଅର୍ଥାତ୍ ୧୧୪୨ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନକଲେ, ତାହାଙ୍କର ପୁତ୍ର ମହାରାଜ କାମାର୍ଣ୍ଣବ ସିଂହାସନାରୋହଣ କଲେ।

ପୁରୁଷୋତ୍ତମ ଚନ୍ଦ୍ରିକା ଓ ଭାଷା ରଚିତ ଦେଶୀୟ ଇତିହାସରେ ଯେ ଗଙ୍ଗେଶ୍ୱର ନାମକ ସ୍ୱତନ୍ତ୍ର ରାଜାର ନାମୋଲ୍ଲେଖ ହୁଏ ତାହା ଭ୍ରମମାତ୍ର, ଗାଙ୍ଗେୟ ରାଜ ନରସିଂହଦେବଙ୍କର ତାମ୍ରଶାସନରେ ଚୋଡଗଙ୍ଗ ଗଙ୍ଗେଶ୍ୱର ନାମରେ ଅଭିହିତ ହୋଇଅଛନ୍ତି, କାମାର୍ଣ୍ଣବଙ୍କର ପରଲୋକ ଗମନାନନ୍ତର ଚୋଡଗଙ୍ଗଙ୍କର ୨ ୟ ପୁତ୍ର ରାଘବ ସିଂହାସନାରୋହଣ କରନ୍ତି, ଏହି ରାଘବ ସୂର୍ଯ୍ୟବଂଶୀୟ ରାଜ-କନ୍ୟା ଇନ୍ଦିରାଙ୍କର ଗର୍ଭ-ସମ୍ଭୂତ ବୋଲି ନରସିଂହ ଦେବଙ୍କର ତାମ୍ର ଶାସନରେ ପ୍ରତିପନ୍ନ ହୋଇଅଛି, ସେ ୧୫ ବର୍ଷ କାଳ ରାଜତ୍ୱ

କରନ୍ତି , ମାଦଳାପାଞ୍ଜିରେ ଚୋଡଗଙ୍ଗଙ୍କର ପୁତ୍ର ଗଙ୍ଗେଶ୍ୱର ବୋଲି ଯାହା ଉଲ୍ଲେଖ କରା ହୋଇଅଛି , ତାହା ଏହାଙ୍କୁହିଁ ଲକ୍ଷ୍ୟ । ଯେହେତୁ ରାଜତ୍ୱ କାଳ ସମାନ ଦେଖାଯାଏ ( ନରସିଂହ ଦେବଙ୍କର ତାମ୍ର-ଶାସନ ୫୨ ଶ୍ଳୋକ ) ତତ୍ପରେ ଚୋଡଗଙ୍ଗଙ୍କର ତୃତୀୟ ପୁତ୍ର ୨ ୟ ରାଜରାଜ ଅପର ମହିଷୀ ଚନ୍ଦ୍ରଲେଖା ଗର୍ଭ-ସମ୍ଭୂତ ଅଟନ୍ତି । ଏହାଙ୍କର ଚରିତ୍ର ଅମାନୁଷିକ ଥିଲା । ଏ ବ ୧୫ ର୍ଷ କାଳ ରାଜତ୍ୱ କରିଥିଲେ ( ନରସିଂହ ଦେବଙ୍କର ତାମ୍ରଶାସନ ୫୩ ରୁ ୫୮ ଶ୍ଳୋକ ) ଏହାଙ୍କ ରାଜତ୍ୱ ପରେ ଏହାଙ୍କର ସହୋଦର ଅନିୟଙ୍କଭୀମ-ଦେବ ନାମାନ୍ତର ଅନଙ୍ଗ ଭୀମ ଦେବ ସିଂହାସନା ରୋହଣ କରନ୍ତି । ଏ ଦଶବର୍ଷ ମାତ୍ର ରାଜତ୍ୱ କରି-ଥିଲେ । ତାହାଙ୍କର ପୁତ୍ର ତୃତୀୟ ରାଜରାଜ ବାରଲ୍ଲ ଦେବୀଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ, ଏ ବ ୧୭-ର୍ଷ ମାତ୍ର ( ୧୨୦୩ – ୧୨୧୯ ଖ୍ରୀଃ) ରାଜତ୍ୱ କରନ୍ତି ।

୧ ମାଦଳା ପାଞ୍ଜିରେ ରାଜରାଜେଶ୍ୱର ନାମରେ

ଅଭିହିତ । ଏହାଙ୍କର ପରଲୋକ ଗମନ ଉତ୍ତାରୁ ମଙ୍କୁଣ-
ଦେବୀଙ୍କର ଗର୍ଭଜାତ ଅନଙ୍ଗଭୀମ ରାଜ ପଦରେ ଅଭିଷିକ୍ତ
ହୁଅନ୍ତି । ସେ ଜଗନ୍ନାଥ ମନ୍ଦିରର ନିର୍ମାଣ କର୍ତ୍ତା ବୋଲି
ଉଲ୍ଲେଖ ଥିଲେ ମଧ୍ୟ ଏହା ଅଯଥାର୍ଥ ଅଟେ । କାରଣ
ଯେଉଁ ଖ୍ରୀଷ୍ଟାବ୍ଦ ଉଲ୍ଲେଖ ଅଛି ତାହା ଚୋଡ଼ଗଙ୍ଗଙ୍କର
ପୁତ୍ର ଅନଙ୍ଗଙ୍କ ଭୀମ ନାମାନ୍ତର ଅନଙ୍ଗଭୀମଙ୍କ (୧ ମ)
ସମକାଳୀନ ଅଟେ । ଅତଏବ ଏହାଙ୍କୁହିଁ ଜଗନ୍ନାଥ-
ମନ୍ଦିର-ନିର୍ମାତା ବୋଲି କଥିତ ହୋଇଅଛି , କିନ୍ତୁ
ତାହା ସତ୍ୟ ନୁହେ ସେ କେଣ୍ଟି ମନ୍ଦିରର ସଂସ୍କାରକ ମାତ୍ର ,
ଏହା ମହାର୍ଘିକପୁରର ମେଘେଶ୍ୱର ମନ୍ଦିରରୁ ପ୍ରାପ୍ତ
ଶିଳାଫଳକର ୨୩ ଠାରେ ଲିଖିତ ଅଛି ୯ବ ୯ବ
ଶିଳାଫଳକ ଚୋଡ଼ଗଙ୍ଗଙ୍କର ପୁତ୍ର ଅନଙ୍ଗଙ୍କଭୀମ ବା
ଅନଙ୍ଗଭୀମଙ୍କ ଦ୍ୱାରା ଲିଖିତ ୯ବ ସେ ସେହି ଶିବ
ମନ୍ଦିରର ପ୍ରତିଷ୍ଠାତା ।

ଶ୍ଳୋକ

" ଚତ୍ୱାର ଉଷ ପ୍ରତିପତ୍ତି ସମ୍ପ୍ରଦାୟ୍ଗଂ ପୁରାଣାନ

ପୁନ ର୍ନବାମା ଦଃ "

ଅତଏବ ତାଙ୍କସମୟରେ ପୁଣ୍ୟ-ମନ୍ଦିରର ସଂସ୍କାର ବା ପୂର୍ଣ୍ଣତା ପ୍ରାପ୍ତ ହୋଇ ଥିବାର ଅନୁମିତ ହୁଏ , ରାଜରାଜଙ୍କର ପୁତ୍ର ଦ୍ୱିତୀୟ ଅନଙ୍ଗଭୀମଙ୍କ ସମୟରେ ନୁହେ । ନରସିଂହ ଦେବଙ୍କର ୬୯ ଓ ୮୦ ଶ୍ଳୋକ ରେ ରାଜରାଜଙ୍କର ପୁତ୍ର ଅନଙ୍ଗଭୀମ ବିଦ୍ବାନ୍ , ଶାସ୍ତ୍ରଦର୍ଶୀ , ମହାବୀର , ପଣ୍ଡିତପ୍ରିୟ , ପରମ ବୈଷ୍ଣବ , ସମସ୍ତ କଳିଙ୍ଗର ଅଧି- ପତି ବୋଲି ବର୍ଣ୍ଣିତ ଅଛି ଏବଂ ତାହାଙ୍କ ରାଜତ୍ୱରେ ସତ୍ୟ ଯୁଗର ଆବିର୍ଭାବ ଥିଲା ବୋଲି ଉଲ୍ଲେଖ ଅଛି ।

୨ୟ ଅନଙ୍ଗଭୀମ ଦେବଙ୍କର ଔରସରେ କସ୍ତୁରା- ଦେବୀଙ୍କର ଗର୍ଭରେ ମହାରାଜ ନରସିଂହ ଦେବଙ୍କର ଜନ୍ମ ଗ୍ରହଣ ହୁଏ , ଏ " ପ୍ରତାପବୀର ଶ୍ରୀ " ଉପାଧି ଧାରଣ କରିଥିଲେ ( ଗଞ୍ଜାମ ଅନ୍ତର୍ଗତ ଶ୍ରୀ କୂର୍ମ୍ମସ୍ୱାମୀ ମନ୍ଦିରର ୧୧୭୨ ଶକ ( ୧୨୫୦ ଖ୍ରୀଃ ) ଲିଖିତ ଶିଳା- ଫଳକରେ ଏହି ଉପାଧି ଦେଖାଯାଏ ) । ମାଳ୍ୟ- ଚନ୍ଦ୍ରାତ୍ମଜା ସୀତାଦେବୀଙ୍କର ଗର୍ଭଜାତ , ନର -

ସିଂହ (୧ମ) ଦେବଙ୍କର ପୁତ୍ର ଭାନୁଦେବ ୧୨୮୪ ଖ୍ରୀଷ୍ଟାବ୍ଦରେ ରାଜ୍ୟପ୍ରାପ୍ତ ହୁଅନ୍ତ ଏବ ଦଶବର୍ଷମାତ୍ର ରାଜତ୍ୱ କରନ୍ତ, ପରେ ଭାନୁଦେବଙ୍କର ଔରଷରେ ଚାଲୁକ୍ୟ-କୁଳ-ସମ୍ଭୂତା ଜାକଲ୍ଲଦେବୀ-ଗର୍ଭରେ ଦ୍ୱିତୀୟ ନରସିଂହ ଦେବଙ୍କର ଜନ୍ମହୁଏ । ଏ 'ବୀରଶ୍ରୀ ବୀରବର' ଉପାଧି ଧାରଣ କରନ୍ତ । ଏହି ବୀରାଗ୍ରଣୀ ଆପଣାର ନାମ ଅକ୍ଷୟ କରିବାକୁ କୋଣାର୍କ ମନ୍ଦିର ନିର୍ମ୍ମାଣ କରନ୍ତ ।

ଏହି ସମସ୍ତ ଗାଙ୍ଗେୟଭୂପତିଙ୍କର ପ୍ରତିନିଧିରୂପେ ଉତ୍କଳ ଓ ଗଞ୍ଜାମର ରାଜାମାନେ ନିଯୁକ୍ତ ଥିଲେ ଓ ଉତ୍ତରକାଳେ ଉତ୍କଳ ସମ୍ରାଟଙ୍କର ପ୍ରିୟଭାଜନ ହୋଇ ଉପାଧିମାନ ଗ୍ରହଣ କରିଥିଲେ, ସେହି ୨ ଉପାଧି ଅଦ୍ୟାପି ସେମାନେ ଗୌରବାନ୍ୱିତ ଭାବେ ଧାରଣ କରି ଆସୁ ଅଛନ୍ତ ।

---

ଚେଲ-ରାଜକନ୍ୟା-ଗର୍ଭ-ସମ୍ଭୂତ ଗଙ୍ଗାମୂଳ ଅନନ୍ତ-ବର୍ମ୍ମା ମାତୃବଂଶ ଓ ପିତୃବଂଶ ଉଭୟର ସ୍ମାରକ ସ୍ୱରୂପ ନିଜନାମକୁ "ଚୋଳ-ଗଙ୍ଗ" ବୋଲି ପରିଚୟ ଦେଲେ ।

ଏହି ଗାଙ୍ଗେୟ ମାନେ ବହୁଶାଖାରେ ବିଭକ୍ତ ହୋଇ କଳାହାଣ୍ଡି, ପାଟଣା, କାଙ୍କେର ଏବଂ ରାୟପୁର ଅଞ୍ଚଳର କେତେକ ସ୍ଥାନରେ ରାଜତ୍ୱ କରୁଥିଲେ, ଅଦ୍ୟାପି ସେମାନଙ୍କର କୀର୍ତ୍ତିମାଳା ସେହି ୨ ସ୍ଥାନ ମାନଙ୍କରେ ବିଦ୍ୟମାନ ଅଛି ଓ ସ୍ୱନାମ ଧନ୍ୟ ମହା-ରାଜାଧିରାଜ କାଙ୍କେର-ଅଧୀଶ୍ୱର ମଧ୍ୟ ଗଙ୍ଗବଂଶ ସମ୍ଭୂତ ଅଟନ୍ତି ।

ଚୋଳଗଙ୍ଗ ଯେଉଁ କାଳରେ ଓଡ଼ିଶାକୁ ଆସି ବିଜୟ ପତାକା ଉତ୍ତୋଳନ କରିଥିଲେ ସେହି ସମ-ୟରେ ତାହାଙ୍କର ଭ୍ରାତା ଦାକ୍ଷିଣାତ୍ୟରେ ରାଜତ୍ୱ କରୁ-ଥିଲେ । ବଡ଼ଖେମଣ୍ଡି ମହାରାଜାଙ୍କ ବଂଶ ତାଲିକାରୁ ଜଣାଯାଏ ଯେ ନୀଳକଣ୍ଠ ଅନଙ୍ଗଭୀମ ଦେବ କଳାହାଣ୍ଡି ପ୍ରଭୃତି ରାଜ୍ୟ ଜୟକରି କଳାହାଣ୍ଡିରେ ମାଣିକେଶ୍ୱରୀ ମନ୍ଦିର ସ୍ଥାପନ ଓ ଗୋଟିଏ ବୃହତ୍ ପୁଷ୍କରିଣୀ ଖନନ କରାଇ ଥିଲେ । ତାହାଙ୍କର ସନ୍ତାନ ପ୍ରଭୃତି ନଥିବାରୁ ପାଟଣାର ପାଟଣେଶ୍ୱରୀ ଦେବୀଙ୍କ ଉପାସନା କରି

କଲଶେଖର ନାମଧେୟ ପୁତ୍ରଙ୍କୁ ଉପର କେତେଟି ପୁତ୍ର ସନ୍ତ ଲାଭ କରିଥିଲେ । ଏହି କଲଶେଖର ପାଟଣା ପୂର୍ବଦେଶ ଏବ ପାଟଣାର ଉତ୍ତର ଦେଶୀୟ ରାଜା ମାନଙ୍କୁ ଯୁଦ୍ଧରେ ପରାଜୟ କରି ଅଧିପତ୍ୟ ବିସ୍ତାର କରିଥିଲେ ଏବ ତାହାଙ୍କର ଅପର ଭ୍ରାତା କଳା-ହାଣ୍ଡିରେ ରାଜତ୍ୱ କଲେ । କଳାହାଣ୍ଡି ରାଜ୍ୟବାସୀ ଲୋକମାନଙ୍କ ମୁଖରୁ ଶୁଣାଯାଏ ଯେ କଳାହାଣ୍ଡିର ଗାଙ୍ଗେୟ ରାଜା ଏକଜଣ ନାଗବଂଶୀୟ ବ୍ୟକ୍ତିଙ୍କୁ ଜାମାତୃଭାବରେ ଗ୍ରହଣ କରି ତାହାଙ୍କ ହସ୍ତରେ ରାଜ୍ୟ-ଭାର ଅର୍ପଣ କରି ତୀର୍ଥାଟନ ନିମନ୍ତେ ଗମନ କଲେ । ପ୍ରତ୍ୟାବୃତ୍ତ ହେବାକାଳେ ତାହାଙ୍କର ଉକ୍ତ ଜାମାତା ତାଙ୍କୁ ରାଜ୍ୟରେ ପ୍ରବେଶ କରିବାକୁ ନଦେଇ ନିରା-ଶ୍ରୟ ଅବସ୍ଥାପନ୍ନ ଉକ୍ତ ରାଜାଙ୍କୁ ତଡ଼ି ଦେଇଥିଲେ । ତଦବଧି ଉକ୍ତ ନାଗବଂଶୀୟ ରାଜାମାନେ କଳାହାଣ୍ଡିରେ ରାଜତ୍ୱ କରି ଅଧୁ ଅଛନ୍ତି । ଯେଉଁ ରାଜା ପାଟଣାରେ ରାଜତ୍ୱ କରୁଥିଲେ ତାଙ୍କର ବଂଶାନୁକ୍ରମେ ଜ ୫ । ୨

ଣ ରାଜାଙ୍କ ଶାସନ ପରେ ହସ୍ତିବର୍ମିର ଦେବଙ୍କ ରାଜତ୍ୱ କାଳରେ ରମ୍ଭାଇ ଦେବ ନାମକ ଜଣେ ଚୈତାନ ବଂଶୀୟ ରାଜା ତାଙ୍କୁ ପରାସ୍ତ କରି ହତ୍ୟା କରିଥିଲେ । ପାଟନାରେ ରାଣୀପୁର ଝରିଆ ଓ ଟିଟିଲାଗଡ ପ୍ରଭୃତି ସ୍ଥାନ ମାନଙ୍କରେ ସେହି ଗଙ୍ଗବଂଶୀୟ ରାଜା ମାନଙ୍କର କୀର୍ତ୍ତିମାଳା ମନ୍ଦିରାଦି ରୂପରେ ବିଦ୍ୟମାନ ରହିଅଛି । ସେ ସ୍ଥାନର ସୋମେଶ୍ୱର ମନ୍ଦିର, ଭୈରବୀ ଚନ୍ଦ୍ର ଓ ରାଜଭବନର ଧ୍ୱଂସାବଶେଷର ବିଦ୍ୟମାନ ମୂକସାକ୍ଷି-ରୂପେ ତାଙ୍କର ରାଜତ୍ୱର ବଶିଷ୍ଟ ପରିଚୟ ପ୍ରଦାନ କରୁଅଛି । ଉକ୍ତ ହସ୍ତିବର୍ମିର ଦେବଙ୍କର ପୁତ୍ର ପରଶୁ-ଦେବ ବାମଣ୍ଡା ରାଜବଂଶର ସ୍ଥାପନ କର୍ତ୍ତା ଅଟନ୍ତି । ତାହାଁର ବିଶଦ ବିବରଣ ପରେ ଲିଖିତ ହେଲା । ଅଦ୍ୟାବଧି ବାମଣ୍ଡାରେ ଅଷ୍ଟାବିଂଶତି ପୁରୁଷାନୁକ୍ରମରେ ଗଙ୍ଗବଂଶୀୟ ରାଜାମାନେ ରାଜତ୍ୱ କରି ଆସୁଅଛନ୍ତି ।

ଐତିହାସିକ ଗଣନାରେ ବାମଣ୍ଡାରେ ଗଙ୍ଗବଂଶୀୟ ରାଜା ମାନଙ୍କର ପ୍ରାଦୁର୍ଭାବ ଅତକୁ ସାତ ଶତ ବର୍ଷ ହେବ ।

ବାମଣ୍ଡାର ସ୍ୱତନ୍ତ୍ର ସିଂହାସନାରୂଢ଼ ଗାଙ୍ଗେୟ ରାଜା-
ମାନଙ୍କର ନାମାବଳୀ :—

୧ -- ରାଜା ସ୍ୱୟମ୍ଭୂ ଦେବ
୨ -- „ ନାରାୟଣ ଦେବ
୩ -- „ ଜଗନ୍ନାଥ ଦେବ
୪ -- „ ଗଙ୍ଗାଧର ଦେବ
୫ -- „ ଜଗଜ୍ଜ୍ୟୋତି ତ୍ରିଭୁବନ ଦେବ
୬ -- „ ରୁଦ୍ରନାରାୟଣ ଦେବ
୭ -- „ କାନଫୋଡା ସୁରଲ ଦେବ
୮ -- „ ରଘୁନାଥ ଦେବ
୯ -- „ କଣ୍ଟୁରୀ ଦେବ
୧୦ -- „ ରାମଚନ୍ଦ୍ର ଦେବ
୧୧ -- „ ଦୁଲ୍ଲା ଦେବ
୧୨ -- „ ମୁଖି ଦେବ
୧୩ -- „ ବିଶ୍ୱନାଥ ଦେବ
୧୪ -- „ ସଦାନନ୍ଦ ଦେବ

୧୫ -- „ ବିକ୍ରମ ଦେବ

୧୬ -- „ ରଘୁନାଥ ଦେବ

୧୭ -- „ ବିଭୂତ ଦେବ

୧୮ -- „ ଭାଗୀରଥି ଦେବ

୧୯ -- „ ହାଡୁ ଦେବ

୨୦ -- „ ଚନ୍ଦ୍ରଶେଖର ଦେବ

୨୧ -- „ ପ୍ରତାପରୁଦ୍ର ଦେବ

୨୨ -- „ ସର୍ବେଶ୍ୱର ଦେବ

୨୩ -- „ ଅର୍ଜୁନ ଦେବ

୨୪ -- „ ବାଲୁଙ୍କା ବୃଷଭ ଦେବ

୨୫ -- „ ଖଗେଶ୍ୱର ଦେବ

୨୬ -- „ ବ୍ରଜସୁନ୍ଦର ତ୍ରିଭୁବନ ଦେବ

୨୭ -- „ ବାସୁଦେବ ସୁଢଳ ଦେବ
K. C. I. E

୨୮ -- ବର୍ତ୍ତମାନ ରାଜା ଶ୍ରୀମାନ୍ ସଚ୍ଚିଦାନନ୍ଦ
ତ୍ରିଭୁବନ ଦେବ